# କପିଳ ଗୀତା

## ବ୍ୟାସଦେବ ରଚିତ







ଓଡ଼ିଆ ଅନୁବାଦ:
ଯୋଗେଶ୍ୱରୀ ଲାଲ୍

ସମ୍ପାଦନା:
ଶ୍ରୀଧର୍ ଚୈତନ୍ୟ

# କପିଳ - ଗୀତା

## (ବ୍ୟାସଦେବ ରଚିତ)

ଓଡ଼ିଆ ଅନୁବାଦ

ଯୋଗେଶ୍ୱରୀ ଲାଲ

ସଂପାଦନା:

ଶ୍ରୀଧର ଚୈତନ୍ୟ




ସେଣ୍ଟ୍ରାଲ ଚିନ୍ମୟ ମିଶନ୍ ଟ୍ରଷ୍ଟ

ବମ୍ବେ - ୪୦୦ ୦୭୨

ପ୍ରଥମ ସଂସ୍କରଣ - ୨୦୦୯
ମୁଦ୍ରଣ ସଂଖ୍ୟା : ୧୦୦୦

ଅନୁବାଦ : ଯୋଗେଶ୍ୱରୀ ଲାଲ

ସଂପାଦନା : ଶ୍ରୀଧର ଚୈତନ୍ୟ

ପ୍ରକାଶନ :
ସେଣ୍ଟ୍ରାଲ ଚିନ୍ମୟ ମିଶନ ଟ୍ରଷ୍ଟ
ଓଡ଼ିଆ ପ୍ରକାଶନ ବିଭାଗ
ପ୍ଲଟ ନଂ -୧୮୦, ଭି. ଆଇ. ପି. ଏରିଆ,
ପୋଷ୍ଟ - ଆଇ. ଆର୍. ସି. ଭିଲେଜ, ଭୁବନେଶ୍ୱର -୧୫
ଫୋନ : (୦୬୭୪) ୨୫୫୪୦୦୪

ମୁଦ୍ରଣ :
ଶ୍ରୀଜେରକ୍ସ ଆଣ୍ଡ୍ ଅଫ୍‌ସେଟ୍, ତାରିଣୀ ଲେନ୍,
ବକ୍ସିବଜାର ରୋଡ଼, କଟକ -୧
ମୋ. : ୯୩୩୮୧୧୧୮୪୨, ୯୮୬୧୨୩୪୫୦୩

# ପ୍ରଥମ ଅଧ୍ୟାୟ

## ଦେବହୂତିରୁବାଚ

**ନିର୍ବିଣ୍ଣା ନିତରାଂ ଭୂମନ୍ନସଦିନ୍ଦ୍ରିୟ ତର୍ଷଣାତ୍ ।**
**ଯେନ ସମ୍ଭାବ୍ୟମାନେନ ପ୍ରପନ୍ନାନ୍ଧ ତମଃ ପ୍ରଭୋ ॥ ୧ ॥**

ଦେବହୂତି କହିଲେ -

ହେ ଅନନ୍ତ, ଅସୀମ ଭଗବାନ ! ହେ ପ୍ରଭୋ ! ଏହି ଦୁଷ୍ଟ ଇନ୍ଦ୍ରିୟମାନଙ୍କର ଲାଳସା ଦ୍ୱାରା ମୁଁ ବହୁତ ଦୁଃଖ ପାଉଅଛି, ଏବଂ ଏମାନଙ୍କର ଇଚ୍ଛା ପୂର୍ଣ୍ଣ କରୁଥିବା ଯୋଗୁଁ ହିଁ ଘୋର ଅଜ୍ଞାନାନ୍ଧକାରରେ ପଡ଼ିରହିଛି ।

**ତସ୍ୟ ତ୍ୱଂ ତମସୋଽନ୍ଧସ୍ୟ ଦୁଷ୍ପାରସ୍ୟାଦ୍ୟ ପାରଗମ୍ ।**
**ସଚ୍ଚକ୍ଷୁର୍ଜନ୍ମନାମନ୍ତେ ଲବ୍ଧଂ ମେ ତ୍ୱଦନୁଗ୍ରହାତ୍ ॥ ୨ ॥**

ବର୍ତ୍ତମାନ ଆପଣଙ୍କ କୃପାରୁ ମୋର ଜନ୍ମପରମ୍ପରା ସମାପ୍ତ ହୋଇଯାଇଛି ଏହାଦ୍ୱାରା ଏହି ଦୁସ୍ତର ଅଜ୍ଞାନାନ୍ଧକାରରୁ ଉଦ୍ଧାର ହେବା ପାଇଁ ସୁନ୍ଦର ନେତ୍ରରୂପ ଆପଣ ପ୍ରାପ୍ତ ହୋଇଛନ୍ତି । ଅର୍ଥାତ୍ ମୋ କୋଳରେ ଜନ୍ମ ଗ୍ରହଣ କରିଛନ୍ତି ।

**ୟ ଆଦ୍ୟୋ ଭଗବାନ୍ ପୁଂସାମୀଶ୍ୱରୋ ବୈ ଭବାନ୍ କିଲ ।**
**ଲୋକସ୍ୟ ତମସାନ୍ଧସ୍ୟ ଚକ୍ଷୁଃ ସୂର୍ଯ୍ୟ ଇବୋଦିତଃ ॥ ୩ ॥**

ଆପଣ ସଂପୂର୍ଣ୍ଣ ଜୀବଙ୍କର ସ୍ୱାମୀ ଭଗବାନ ଆଦିପୁରୁଷ ଅଟନ୍ତି, ତଥା ଅଜ୍ଞାନାନ୍ଧକାରରୁ ଅନ୍ଧ (ଅଜ୍ଞାନ) ପୁରୁଷଙ୍କ ପାଇଁ ସୂର୍ଯ୍ୟସ୍ୱରୂପ ନେତ୍ର ପରି ଉଦୟ ହୋଇଛନ୍ତି ।

**ଅଥ ମେ ଦେବ ସମ୍ମୋହମପାକ୍ରଷ୍ଟୁ ତ୍ୱମର୍ହସି ।**
**ଯୋଽବଗ୍ରହୋଽହଂମମେତୀତ୍ୟେତସ୍ମିନ୍ ଯୋଜିତସ୍ତ୍ୱୟା ॥ ୪ ॥**

ହେ ଦେବ ! ଦେହ-ଗେହ (ଶରୀର-ଗୃହ) ଆଦିରେ ଯେଉଁ ମୁଁ -ମୋର ଭାବ ଉତ୍ପନ୍ନ ହେଉଛି, ତାହା ମଧ୍ୟ ଆପଣଙ୍କ ଦ୍ୱାରା କରାଯାଇଛି । ଏଣୁ ବର୍ତ୍ତମାନ ଆପଣମୋର ଏହି ମହାମୋହକୁ ଦୂର କରନ୍ତୁ ।

**ତଂ ତ୍ୱା ଗତାହଂ ଶରଣଂ ଶରଣ୍ୟଂ**
**ସ୍ୱଭୃତ୍ୟ - ସଂସାର - ତରୋଃ କୁଠାରମ୍ ।**
**ଜିଜ୍ଞାସୟାହଂ ପ୍ରକୃତେଃ ପୂରୁଷସ୍ୟ**
**ନମାମି ସଦ୍ଧର୍ମବିଦାଂ ବରିଷ୍ଠମ୍ ॥ ୫ ॥**

ଆପଣ ଆପଣଙ୍କ ଭକ୍ତମାନଙ୍କ ସଂସାରରୂପକ ବୃକ୍ଷ କାଟିବା ପାଇଁ ପ୍ରକୃତ କୁଠାର ଅଟନ୍ତି । ମୁଁ ପ୍ରକୃତି ଏବଂ ପୁରୁଷ ବିଷୟରେ ଜ୍ଞାନ ପ୍ରାପ୍ତ କରିବାରେ ତୃଷ୍ଣା ଧରି ଆପଣ ଶରଣାଗତ ବତ୍ସଳଙ୍କ ଶରଣରେ ଆସିଛି । ଆପଣ ଭଗବତ ଧର୍ମ ଜାଣିଥିବାବାଲାଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଅଟନ୍ତି, ମୁଁ ଆପଣଙ୍କୁ ପ୍ରଣାମ କରୁଅଛି ।

**ଶ୍ରୀ ଭଗବାନୁବାଚ**

**ଯୋଗ ଆଧ୍ୟାତ୍ମିକଃ ପୁଂସାଂ ମତୋ ନିଃଶ୍ରେୟସାୟ ମେ ।**
**ଅତ୍ୟନ୍ତୋପରତିର୍ୟତ୍ର ଦୁଃଖସ୍ୟ ଚ ସୁଖସ୍ୟ ଚ ॥ ୬ ॥**

ଭଗବାନ କପିଳ କହିଲେ -

ହେ ମାତା ! ଏହା ମୋର ନିଶ୍ଚୟ ଅଟେ ଯେ, ଆଧ୍ୟାତ୍ମିକ ଯୋଗ ହିଁ ମନୁଷ୍ୟମାନଙ୍କର ପରମ ଆନନ୍ଦ ମୁଖ୍ୟ ସାଧନ ଅଟେ, ଯେଉଁଠାରେ ସମ୍ପୂର୍ଣ୍ଣ ଦୁଃଖ ଓ ସୁଖର ନିବୃତ୍ତି ହୋଇଥାଏ ।

**ତମିମଂ ତେ ପ୍ରବକ୍ଷ୍ୟାମି ୟମବୋଚଂ ପୁରାନଘେ ।**
**ଋଷୀଣାଂ ଶ୍ରୋତୁକାମାନାଂ ଯୋଗଂ ସର୍ବାଂଗ-ନୈପୁଣମ୍ ॥ ୭ ॥**

ହେ ପତିବ୍ରତା ସାଧ୍ୱୀ ! ସର୍ବାଙ୍ଗ ସହିତ(ଅଷ୍ଟାଙ୍ଗଯୋଗ) ସେହି ଯୋଗକୁ ମୁଁ ପ୍ରଥମେ ପୂର୍ବେ ଶ୍ରବଣ ଇଚ୍ଛୁକ ଋଷିମାନଙ୍କୁ ଶିକ୍ଷା ଦେଇଥିଲି । ବର୍ତ୍ତମାନ ସେହି ଜ୍ଞାନ ମୁଁ ଆପଣଙ୍କୁ କହିବି ।

**ଚେତଃ ଖଲ୍ୱସ୍ୟ ବନ୍ଧାୟ ମୁକ୍ତୟେ ଚାତ୍ମନୋ ମତମ୍ ।**
**ଗୁଣେଷୁ ସକ୍ତଂ ବନ୍ଧାୟ ରତଂ ବା ପୁଂସି ମୁକ୍ତୟେ ॥ ୮ ॥**

ଏହି ଜୀବର ବନ୍ଧନ ଓ ମୋକ୍ଷର କାରଣ ମନକୁ ହିଁ ମାନି ନିଆଯାଇଛି । ବିଷୟରେ ଆସକ୍ତ ହେବାଦ୍ୱାରା ସେ ବନ୍ଧନର କାରଣ ହୁଏ ଏବଂ ପରମାତ୍ମାଙ୍କଠାରେ ଅନୁରକ୍ତ ହେଲେ ତାହା ମୋକ୍ଷର କାରଣ ହୁଏ ।

**ନ ଯୁଜ୍ୟମାନୟା ଭକ୍ତ୍ୟା ଭଗବତ୍ୟଖିଳାତ୍ମନି ।**
**ସଦୃଶୋଽସ୍ତି ଶିବଃ ପନ୍ଥା ଯୋଗିନାଂ ବ୍ରହ୍ମ-ସିଦ୍ଧୟେ ॥ ୯ ॥**

ଭକ୍ତି ପରି ଅନ୍ୟ କୌଣସି ମଙ୍ଗଳମୟ ମାର୍ଗ ନାହିଁ । ଯୋଗୀମାନଙ୍କ ପାଇଁ ଭଗବତ୍ ପ୍ରାପ୍ତି ନିମିତ୍ତ ସର୍ବାତ୍ମା ଶ୍ରୀହରିଙ୍କ ପ୍ରତି କରାଯାଉଥିବା ଭକ୍ତିଭଳି ଅନ୍ୟ କୌଣସି ମଙ୍ଗଳମୟ ପନ୍ଥା ନାହିଁ ।

**ପ୍ରସଙ୍ଗମଜରଂ ପାଶମାତ୍ମନଃ କବୟୋ ବିଦୁଃ ।**
**ସ ଏବ ସାଧୁଷୁ କୃତୋ ମୋକ୍ଷ-ଦ୍ୱାରମପାବୃତମ୍ ॥ ୧୦ ॥**

ବିବେକୀ ମନୁଷ୍ୟସଙ୍ଗ ବା ଆସକ୍ତିକୁ ହିଁ ଆତ୍ମାର ଅଚ୍ଛେଦ୍ୟ ବନ୍ଧନ ମାନନ୍ତି, କିନ୍ତୁ ସେହି ସଙ୍ଗ ବା ଆସକ୍ତି ଯେତେବେଳେ ସନ୍ଥ ଓ ମହାପ୍ରଭୁଙ୍କ ପ୍ରତି ହୋଇଯାଏ ସେତେବେଳେ ମୋକ୍ଷର ଦ୍ୱାର ଖୋଲା ହୋଇଯାଏ ।

**ତିତିକ୍ଷବଃ କାରୁଣିକାଃ ସୁହୃଦଃ ସର୍ବଦେହିନାମ୍ ।**
**ଅଜାତ - ଶତ୍ରବଃ ଶାନ୍ତାଃ ସାଧବଃ ସାଧୁ ଭୂଷଣାଃ ॥ ୧୧ ॥**

**ମୟ୍ୟନନ୍ୟେନ ଭାବେନ ଭକ୍ତିଂ କୁର୍ବନ୍ତି ୟେ ଦୃଢ଼ାମ୍ ।**
**ମତ୍କୃତେ ତ୍ୟକ୍ତ - କର୍ମାଣସ୍ତ୍ୟକ୍ତ - ସ୍ୱଜନ - ବାନ୍ଧବାଃ ॥ ୧୨ ॥**

**ମଦାଶ୍ରୟାଃ କଥା ମୃଷ୍ଟାଃ ଶୃଣ୍ୱନ୍ତି କଥୟନ୍ତି ଚ ।**
**ତପନ୍ତି ବିବିଧାସ୍ତାପା ନୈତାନ୍ମଦ୍ଗତ - ଚେତସଃ ॥ ୧୩ ॥**

ଯେଉଁମାନେ ସହନଶୀଳ ଦୟାଳୁ, ଦେହଧାରୀମାନଙ୍କର ଅକାରଣ ହେତୁ, କାହା ପ୍ରତି ଶତ୍ରୁଭାବ ରଖୁ ନଥିବା, ଶାନ୍ତ, ସରଳ ସ୍ୱଭାବ ଏବଂ ସତ୍‌ପୁରୁଷମାନଙ୍କୁ ସମ୍ମାନ କରନ୍ତି, ଯେଉଁମାନେ ମୋଠାରେ ଅନନ୍ୟ ଭାବଦ୍ୱାରା ସୁଦୃଢ଼ ପ୍ରେମ କରନ୍ତି, ମୋ ପାଇଁ ସଂପୂର୍ଣ୍ଣ କର୍ମ ତଥା ନିଜର ସ୍ୱଜନବାନ୍ଧବଙ୍କୁ ମଧ୍ୟ ତ୍ୟାଗ କରନ୍ତି ଏବଂ ମତ୍ ପରାୟଣ ହୋଇ ମୋର ପବିତ୍ର କଥା ଶ୍ରବଣ, କୀର୍ତ୍ତନ କରନ୍ତି ତଥା ମୋଠାରେ ଚିତ୍ତ ବା ମନ ଲଗାଇଥାନ୍ତି ସେହି ଭକ୍ତମାନଙ୍କୁ ସଂସାରର ବିଭିନ୍ନ ପ୍ରକାରର ତାପ କୌଣସି କଷ୍ଟ ଦେଇପାରେ ନାହିଁ ।

**ତ ଏତେ ସାଧବଃ ସାଧ୍ୱି ସର୍ବ-ସଙ୍ଗ - ବିବର୍ଜିତାଃ ।**
**ସଙ୍ଗସ୍ତେଷ୍ୱଥ ତେ ପ୍ରାର୍ଥ୍ୟଃ ସଙ୍ଗ-ଦୋଷ - ହରା ହି ତେ ॥ ୧୪ ॥**

ହେ ପତିବ୍ରତା ସାଧ୍ୱୀ ! ଏହିପରି ସର୍ବସଙ୍ଗ ପରିତ୍ୟାଗୀ ମହାପୁରୁଷ ହିଁ ସାଧୁ ଅଟନ୍ତି । ତୁମ୍ଭକୁ ସେହିମାନଙ୍କ ସଙ୍ଗ ଲାଭ କରିବା ଉଚିତ୍ । କାରଣ ସେହିମାନେ ଆସକ୍ତିରୁ ଉତ୍ପନ୍ନ ସମସ୍ତ ଦୋଷକୁ ହରଣ କରନ୍ତି ।

**ଦେବହୂତିରୁବାଚ**

**କାଚିତ୍‌ତ୍ୱୟୁଚିତା ଭକ୍ତିଃ କୀଦୃଶୀ ମମ ଗୋଚରା ।**
**ୟୟା ପଦଂ ତେ ନିର୍ବାଣମଞ୍ଜସାନ୍ୱାଶ୍ନବା ଅହମ୍ ॥ ୧୫ ॥**

ଦେବହୂତି କହିଲେ - ହେ ଭଗବାନ୍ ! ଆପଣଙ୍କ ସମୁଚିତ (ବାସ୍ତବ) ଭକ୍ତିର ସ୍ୱରୂପ କ'ଣ ? ଏବଂ ମୋର ପରି ଅବଳାମାନଙ୍କ ପାଇଁ କିଭଳି ଭକ୍ତି ଉପଯୁକ୍ତ ଅଟେ, ଯଦ୍ଦ୍ୱାରା ମୁଁ ସହଜରେ ଆପଣଙ୍କ ନିର୍ବାଣ ପଦକୁ ଅତିଶୀଘ୍ର ପ୍ରାପ୍ତ କରି ପାରିବି ?

**ୟୋ ୟୋଗୋ ଭଗବଦ୍-ବାଣୋ ନିର୍ବାଣାତ୍ମଂସ୍ତ୍ୱୟୋଦିତଃ ।**
**କୀଦୃଶଃ କତି ଚାଙ୍ଗାନି ୟତସ୍ତତ୍ତ୍ୱାବବୋଧନମ୍ ॥ ୧୬ ॥**

ହେ ନିର୍ବାଣ ସ୍ୱରୂପ ପ୍ରଭୋ ! ହେ ମୁକ୍ତ ପୁରୁଷ ! ଯାହାଦ୍ୱାରା ତତ୍ତ୍ୱଜ୍ଞାନ ହୁଏ ଏବଂ ଯିଏ ଲକ୍ଷ୍ୟବିଦ୍ଧ ବାଣ ଭଳି ଭଗବତ୍ ପ୍ରାପ୍ତି କରାଏ, ଆପଣଙ୍କ ଦ୍ୱାରା କୁହାଯାଇଥିବା ସେହି ଯୋଗ କିଭଳି ଏବଂ ତା'ର କେତୋଟି ଅଙ୍ଗ ଅଛି ?

**ତଦେତନ୍ମେ ବିଜାନୀହି ଯଥାହଂ ମନ୍ଦଧୀର୍ହରେ ।**
**ସୁଖଂ ବୁଦ୍ଧ୍ୟେୟ ଦୁର୍ବୋଧଂ ଯୋଷା ଭବଦନୁଗ୍ରହାତ୍ ॥ ୧୭ ॥**

ହେ ହରି ! ଆପଣ ମୋତେ ଏସବୁ ଏଭଳି ଭାବରେ ବୁଝାନ୍ତୁ ଯଦ୍ଦ୍ୱାରା ଆପଣ କୃପାରୁ ମୁଁ ମନ୍ଦମତି ସ୍ତ୍ରୀ ଜାତି ମଧ୍ୟ ଏହି ଦୁର୍ବୋଧ୍ୟ ବିଷୟକୁ ସହଜରେ ବୁଝିପାରିବି ।

**ଶ୍ରୀ ଭଗବାନୁବାଚ**

**ଦେବାନାଂ ଗୁଣଲିଙ୍ଗାନାମାନୁଶ୍ରବିକକର୍ମଣାମ୍ ।**
**ସତ୍ତ୍ୱ ଏବୈକମନସୋ ବୃତ୍ତିଃ ସ୍ୱାଭାବିକୀ ତୁ ଯା ॥ ୧୮ ॥**

ଶ୍ରୀ ଭଗବାନ କପିଳ କହିଲେ -

ହେ ମାତା ! ଯାହାର ମନ ଏକମାତ୍ର ଭଗବାନଙ୍କଠାରେ ଲାଗିଯାଇଛି, ଏଭଳି ମନୁଷ୍ୟ ବେଦ ବିହିତ କର୍ମରେ ଲାଗିଛି ତଥା ବିଷୟମାନଙ୍କର ଜ୍ଞାନ (କର୍ମେନ୍ଦ୍ରିୟ ଏବଂ ଜ୍ଞାନେନ୍ଦ୍ରିୟ ଦୁଇ ପ୍ରକାରର) କରାଉଥିବା ଇନ୍ଦ୍ରିୟମାନଙ୍କର ଯେଉଁ ସତ୍ତ୍ୱମୂର୍ତ୍ତି ଶ୍ରୀହରିଙ୍କ ପ୍ରତି ସ୍ୱାଭାବିକ ପ୍ରବୃତ୍ତି ଅଟେ ତାହା ଭଗବାନଙ୍କର ଅହୈତୁକୀ ଭକ୍ତି ଅଟେ । ଏହା ମୁକ୍ତିଠାରୁ ମଧ୍ୟ ଶ୍ରେଷ୍ଠ, କାରଣ ଜଠରାନଳ ଯେପରି ଖାଇଥିବା ଖାଦ୍ୟକୁ ହଜମ କରେ, ସେହିପରି ଏହା ମଧ୍ୟ କର୍ମସଂସ୍କାରର ଭଣ୍ଡାରରୂପ ଲିଙ୍ଗ ଶରୀରକୁ ତତ୍କାଳ ଭସ୍ମ କରିଦିଏ ।

**ନୈକାତ୍ମତାଂ ମେ ସ୍ପୃହୟନ୍ତି କେଚିନ୍**
**ମତ୍ପାଦ - ସେବାଭିରତା ମଦୀହାଃ ॥ ୧୯ ॥**

**ଯେଽନ୍ୟୋନ୍ୟତୋ ଭାଗବତାଃ ପ୍ରସଜ୍ୟ**
**ସଭାଜୟନ୍ତେ ମମ ପୌରୁଷାଣି ॥ ୨୦ ॥**
**ପଶ୍ୟନ୍ତି ତେ ମେ ରୁଚିରାଣ୍ୟମ୍ବ ସନ୍ତଃ**
**ପ୍ରସନ୍ନ - ବକ୍ତ୍ରାରୁଣ - ଲୋଚନାନି ।**
**ରୂପାଣି ଦିବ୍ୟାନି ବର - ପ୍ରଦାନି**
**ସାକଂ ବାଚଂ ସ୍ପୃହଣୀୟାଂ ବଦନ୍ତି ॥ ୨୧ ॥**

ମୋର ପଦସେବାରେ ପ୍ରୀତି ରଖୁଥିବା ଏବଂ ମୋର ପ୍ରସନ୍ନତା ପାଇଁ ସମସ୍ତ କାର୍ଯ୍ୟ କରୁଥିବା କେତେକ ବଡ଼ ଭାଗ୍ୟବାନ. ଭକ୍ତ, ଯେଉଁମାନେ କି ପରସ୍ପର ମଧ୍ୟରେ ପ୍ରେମପୂର୍ବକ ମୋର ପରାକ୍ରମ ବିଷୟ ଚର୍ଚ୍ଚା କରନ୍ତି, ମୋ ସହିତ ଏକାକାର (ସାଯୁଜ୍ୟମୋକ୍ଷ) ହୋଇଯିବା ପାଇଁ ମଧ୍ୟ ଇଚ୍ଛା କରନ୍ତି ନାହିଁ, ହେ ମାତା ! ସେହି ପରମ ସାଧୁଜନ ଅରୁଣ ନୟନ ଏବଂ ମନୋହର ମୁଖାରବିନ୍ଦଯୁକ୍ତ ମୋର ପରମସୁନ୍ଦର ଓ ବରଦାୟକ ଦିବ୍ୟରୂପ ଦର୍ଶନ କରନ୍ତି ଏବଂ ଆନନ୍ଦରେ ସେମାନଙ୍କ ସହିତ ବାର୍ତ୍ତାଳାପ କରନ୍ତି, ଯାହା ପାଇଁ ବଡ଼ ବଡ଼ ତପସ୍ୱୀ ମଧ୍ୟ ଲାଳାୟିତ ହୁଅନ୍ତି

**ନ କର୍ହିଚିନ୍ମତ୍ପରାଃ ଶାନ୍ତ - ରୂପେ**
**ନଙ୍କ୍ଷ୍ୟନ୍ତି ନୋ ମେଽନିମିଷୋ ଲେଢ଼ି ହେତିଃ ।**
**ଯେଷାମହଂ ପ୍ରିୟ ଆତ୍ମା ସୁତଶ୍ଚ**
**ସଖା ଗୁରୁଃ ସୁହୃଦୋ ଦୈବମିଷ୍ଟମ୍ ॥ ୨୨ ॥**

ଯେଉଁମାନଙ୍କର ମୁଁ ହିଁ ଏକମାତ୍ର ପ୍ରିୟ, ଆତ୍ମା, ପୁତ୍ର, ଗୁରୁ, ସୁହୃଦ ଏବଂ ଇଷ୍ଟଦେବ ଅଟେ - ସେମାନେ ମୋର ଆଶ୍ରୟରେ ରହୁଥିବା ଭକ୍ତଜନ ଶାନ୍ତିମୟ ବୈକୁଣ୍ଠଧାମରେ ପହଞ୍ଚି କୌଣସି ପ୍ରକାର ଏହି ଦିବ୍ୟ ଭୋଗରୁ ବଞ୍ଚିତ ହୁଅନ୍ତି ନାହିଁ ଏବଂ ସେମାନଙ୍କୁ ମୋର କାଳଚକ୍ର ଗ୍ରାସ କରିପାରେ ନାହିଁ ।

**ଇମଂ ଲୋକଂ ତଥୈବାମୁମାତ୍ମାନମୁଭୟାୟିନମ୍ ।**
**ଆତ୍ମାନମନୁ ୟେ ଚେହ ୟେ ରାୟଃ ପଶବୋଗୃହାଃ ॥ ୨୩ ॥**
**ବିସୃଜ୍ୟ ସର୍ବାନନ୍ୟାଂଶ୍ଚ ମାମେବଂ ବିଶ୍ୱତୋମୁଖମ୍ ।**
**ଭଜନ୍ତ୍ୟନନ୍ୟୟା ଭକ୍ତ୍ୟାତାନ୍ ମୃତ୍ୟୋରତିପାରୟେ ॥ ୨୪ ॥**

ହେ ମାତା ! ଯେଉଁମାନେ ଇହଲୋକ, ପରଲୋକ ଏବଂ ଏହି ଦୁଇଟିଯାକ ଲୋକରେ ସାଙ୍ଗରେ ଯାଉଥିବା ବାସନାମୟ ଲିଙ୍ଗ ଶରୀରକୁ ତଥା ଶରୀର ସହିତ ସମ୍ବନ୍ଧ ରଖୁଥିବା ଯେଉଁ ଧନ, ପଶୁ ଏବଂ ଗୃହ୍ୟାଦି ପଦାର୍ଥ ଅଛି ସେ ଗୁଡିକୁ ଓ ଅନ୍ୟାନ୍ୟ ସଂଗ୍ରହଗୁଡ଼ିକୁ ମଧ୍ୟ ତ୍ୟାଗ କରି ଅନନ୍ୟ ଭକ୍ତି ଦ୍ୱାରା ମୋର ସର୍ବବ୍ୟାପକ ରୂପକୁ ପୂଜା କରନ୍ତି – ମୁଁ ସେମାନଙ୍କୁ ମୃତ୍ୟୁ ରୂପକ ସଂସାରରୁ ଉଦ୍ଧାର କରିଦିଏ ।

**ଏତାବାନେବ ଲୋକେଽସ୍ମିନ୍ ପୁଂସାଂ ନିଃଶ୍ରେୟସୋଦୟଃ ।**
**ତୀବ୍ରେଣ ଭକ୍ତିୟୋଗେନ ମନୋ ମୟ୍ୟର୍ପିତଂ ସ୍ଥିରମ୍ ॥ ୨୫ ॥**

ସଂସାରରେ ଏହି ମାର୍ଗ ମନୁଷ୍ୟ ପାଇଁ ସବୁଠାରୁ ଶ୍ରେଷ୍ଠ ଅଟେ । ସେ କଲ୍ୟାଣ ପ୍ରାପ୍ତି ବା ମୁକ୍ତିକୁ ପ୍ରାପ୍ତ କରେ । ତାହାର ଚିତ୍ତ ବା ମନ ତୀବ୍ର ଭକ୍ତି ଯୋଗ ଦ୍ୱାରା ମୋଠାରେ ଲାଗି ସ୍ଥିର ହୋଇଯାଏ ।



# ଦ୍ୱିତୀୟ ଅଧ୍ୟାୟ

## ଶ୍ରୀଭଗବାନୁବାଚ

**ଅଥ ତେ ସଂପ୍ରବକ୍ଷ୍ୟାମି ତତ୍ତ୍ୱାନାଂ ଲକ୍ଷଣଂ ପୃଥକ୍ ।**
**ୟଦ୍ୱିଦିତ୍ୱା ବିମୁଚ୍ୟେତ ପୁରୁଷଃ ପ୍ରାକୃତୈର୍ଗୁଣୈଃ ॥ ୧ ॥**

ଶ୍ରୀଭଗବାନ୍ କପିଳ କହିଲେ -

ହେ ମାତା ! ବର୍ତ୍ତମାନ ମୁଁ ତୁମକୁ ପ୍ରକୃତି ଆଦି ସମସ୍ତ ତତ୍ତ୍ୱମାନଙ୍କର ଭିନ୍ନଭିନ୍ନ ଲକ୍ଷଣ କହିବି । ଏସବୁ ଜାଣି ମନୁଷ୍ୟ ପ୍ରକୃତିର ଗୁଣମାନଙ୍କଠାରୁ ମୁକ୍ତ ହୋଇଯାଏ ।

**ଜ୍ଞାନଂ ନିଃଶ୍ରେୟସାର୍ଥାୟ ପୁରୁଷସ୍ୟାତ୍ମ - ଦର୍ଶନମ୍ ।**
**ୟଦାହୁର୍ବର୍ଣୟେ ତତ୍ତେ ହୃଦୟ - ଗ୍ରନ୍ଥି - ଭେଦନମ୍ ॥ ୨ ॥**

ବହୁ ସଂଖ୍ୟକ ଋଷି କୁହନ୍ତି ଆତ୍ମଦର୍ଶନରୂପ ଜ୍ଞାନ ହିଁ ମନୁଷ୍ୟମାନଙ୍କର ମୋକ୍ଷର କାରଣ ଅଟେ ଏବଂ ସେହି ଜ୍ଞାନ ତାହାର ଅହଂକାର ରୂପକ ହୃଦୟଗ୍ରନ୍ଥିକୁ ଛେଦନ କରେ । ସେହି ଜ୍ଞାନକୁ ମୁଁ ତୁମ ଆଗରେ ବର୍ଣ୍ଣନା କରୁଛି ।

**ଅନାଦିରାତ୍ମା ପୁରୁଷୋ ନିର୍ଗୁଣଃ ପ୍ରକୃତେଃ ପରଃ ।**
**ପ୍ରତ୍ୟଗ୍‌ଧାମା ସ୍ୱୟଂଜ୍ୟୋତିର୍ବିଶ୍ୱଂ ୟେନ ସମନ୍ୱିତମ୍ ॥ ୩ ॥**

ସମସ୍ତ ଜଗତ ଯାହାଠାରୁ ବ୍ୟାପ୍ତ ହୋଇ ପ୍ରକାଶିତ ହେଉଛି, ସେହି ଆତ୍ମା ହିଁ ପୁରୁଷ ଅଟେ । ସେ ଅନାଦି, ନିର୍ଗୁଣ ପ୍ରକୃତିଠାରୁ ଊର୍ଦ୍ଧ୍ୱରେ ଅନ୍ତଃକରଣରେ ସ୍ଫୁରିତ ହେଉଥିବା ଓ ସ୍ୱୟଂ ପ୍ରକାଶ ଅଟେ ।

**ସ ଏଷ ପ୍ରକୃତିଂ ସୂକ୍ଷ୍ମାଂ ଦୈବୀଂ ଗୁଣମୟୀଂ ବିଭୁଃ ।**
**ୟଦୃଚ୍ଛୟୈବୋପଗତାମଭ୍ୟପଦ୍ୟତ ଲୀଳୟା ॥ ୪ ॥**

ସେହି ସର୍ବବ୍ୟାପକ ଭଗବାନ ଭୁଲ ବଶତଃ ଲୀଳା - ବିଳାସ ପୂର୍ବକ ଆସିଥିବା ଅବ୍ୟକ୍ତ ଓ ତ୍ରିଗୁଣାତ୍ମିକା ବୈଷ୍ଣବୀମାୟାକୁ ସ୍ୱଇଚ୍ଛାରେ ସ୍ୱୀକାର କରି ନେଲେ ।

**ଗୁଣୈର୍ବିଚିତ୍ରାଃ ସୃଜତୀଂ ସ୍ୱରୂପାଃ ପ୍ରକୃତିଂ ପ୍ରଜାଃ ।**
**ବିଲୋକ୍ୟ ମୁମୁହେ ସଦ୍ୟଃସ ଇହ ଜ୍ଞାନଗୂହୟା ॥ ୫ ॥**

ଲୀଳା ପରାୟଣ ପ୍ରକୃତି ନିଜର ସତ୍ତ୍ୱାଦି ଗୁଣମାନଙ୍କ ଦ୍ୱାରା ସେମାନଙ୍କ ଅନୁରୂପ ପ୍ରଜାଙ୍କୁ ସୃଷ୍ଟି କଲେ, ଏହା ଦେଖି ପୁରୁଷ ଜ୍ଞାନକୁ ଆଚ୍ଛାଦିତ କରୁଥିବା ତାହାର ଆବରଣ ଶକ୍ତି ଦ୍ୱାରା ମୋହିତ ହୋଇ ନିଜର ସ୍ୱରୂପକୁ ଭୁଲିଗଲା ।

**ଏବଂ ପରାଭିଧ୍ୟାନେନ କର୍ତ୍ତୃତ୍ୱଂ ପ୍ରକୃତେଃ ପୁମାନ୍ ।**
**କର୍ମସୁ କ୍ରିୟମାଣେଷୁ ଗୁଣୈରାତ୍ମନି ମନ୍ୟତେ ॥ ୬ ॥**

ଏହିପରି ନିଜଠାରୁ ଭିନ୍ନ ପ୍ରକୃତିକୁ ନିଜର ସ୍ୱରୂପ ମାନିନେବା ଫଳରେ ପୁରୁଷ ପ୍ରକୃତିର ଗୁଣମାନଙ୍କ ଦ୍ୱାରା କରାଯାଉଥିବା କର୍ମରେ ନିଜକୁ ହିଁ କର୍ତ୍ତା ମାନିନିଏ ।

**ତଦସ୍ୟ ସଂସୃତିର୍ବନ୍ଧଃ ପାରତନ୍ତ୍ର୍ୟଂଚ ତତ୍କୃତମ୍ ।**
**ଭବତ୍ୟକର୍ତ୍ତୁରୀଶସ୍ୟ ସାକ୍ଷିଣୋ ନିର୍ବୃତାତ୍ମନଃ ॥ ୭ ॥**

ଏହି କର୍ତ୍ତୃତ୍ୱାଭିମାନ ଯୋଗୁଁ ହିଁ ଅକର୍ତ୍ତା, ସ୍ୱାଧୀନ, ସାକ୍ଷୀ ଓ ଆନନ୍ଦ ସ୍ୱରୂପ ପୁରୁଷକୁ ଜନ୍ମ - ମୃତ୍ୟୁ ରୂପକ ବନ୍ଧନ ଏବଂ ପରାଧୀନତା ପ୍ରାପ୍ତ ହୁଏ ।

**କାର୍ଯ୍ୟ - କାରଣ - କର୍ତ୍ତୃତ୍ୱେ କାରଣଂ ପ୍ରକୃତିଂ ବିଦୁଃ ।**
**ଭୋକ୍ତୃତ୍ୱେ ସୁଖ - ଦୁଃଖାନାଂ ପୁରୁଷଂ ପ୍ରକୃତେଃ ପରମ୍ ॥ ୮ ॥**

କାର୍ଯ୍ୟରୂପ ଶରୀର, କାରଣରୂପ ଇନ୍ଦ୍ରିୟ ତଥା କର୍ତ୍ତାରୂପ ଇନ୍ଦ୍ରିୟାଦିଷ୍ଠାତୃ ଦେବତାମାନଙ୍କଠାରେ ପୁରୁଷ ଯିଏ ନିଜତ୍ୱ ଆରୋପ କରେ, ସେଥିରେ ବିଜ୍ଞଜନ ପ୍ରକୃତିକୁ ହିଁ କାରଣ ମାନି ନିଅନ୍ତି ତଥା ବାସ୍ତବରେ ପ୍ରକୃତିଠାରୁ ଊର୍ଦ୍ଧ୍ୱ ହୋଇ ମଧ୍ୟ ଯିଏ ପ୍ରକୃତିସ୍ଥ ହେଉଅଛି, ସେହି ପୁରୁଷକୁ ସୁଖ ଦୁଃଖ ଭୋଗିବାରେ କାରଣ ମାନନ୍ତି ।

**ପ୍ରକୃତିସ୍ଥୋଽପି ପୁରୁଷୋ ନାଜ୍ୟତେ ପ୍ରାକୃତୈର୍ଗୁଣୈଃ ।**
**ଅବିକାରାଦକର୍ତୃତ୍ୱାନ୍ନିର୍ଗୁଣତ୍ୱାଜ୍ଜଲାର୍କବତ୍ ॥ ୯ ॥**

ହେ ମାତା ! ଜଳରେ ଯେପରି ପ୍ରତିବିମ୍ବ ସୂର୍ଯ୍ୟଙ୍କ ସହିତ ଶୀତଳତା, ଚଞ୍ଚଳତା ଆଦି ଗୁଣମାନଙ୍କର ସମ୍ବନ୍ଧ ଥାଏ, ସେହି ପରି ପ୍ରକୃତିର କାର୍ଯ୍ୟ ଶରୀରରେ ସ୍ଥିତ ହେଲେ ମଧ୍ୟ ଆତ୍ମା ବାସ୍ତବରେ ତାହାର ସୁଖ ଦୁଃଖ ଆଦି ଧର୍ମରେ ଲିପ୍ତ ହୁଏ ନାହିଁ, କାରଣ ସେ ସ୍ୱଭାବରେ ନିର୍ବିକାର, ଅକର୍ତ୍ତା ଏବଂ ନିର୍ଗୁଣ ଅଟେ ।

**ସ ଏଷ ଯର୍ହି ପ୍ରକୃତେର୍ଗୁଣେଷ୍ୱଭିବିଷଜ୍ଜତେ ।**
**ଅହଂକ୍ରିୟା - ବିମୂଢ଼ାତ୍ମା କର୍ତାସ୍ମୀତ୍ୟଭିମନ୍ୟତେ ॥ ୧୦ ॥**

କିନ୍ତୁ ସେ ଯେତେବେଳେ ସେହି ପ୍ରାକୃତ ଗୁଣ ସହିତ ନିଜର ସମ୍ବନ୍ଧ ସ୍ଥାପନ କରିନିଏ, ସେତେବେଳେ ଅହଂକାର ଦ୍ୱାରା ମୋହିତ ହୋଇ 'ମୁଁ କର୍ତ୍ତା ଅଟେ' - ଏହିପରି ମାନେ ।

**ତେନ - ସଂସାର - ପଦବୀମବଶୋଽଭ୍ୟେତ୍ୟନିର୍ବୃତଃ ।**
**ପ୍ରାସଙ୍ଗିକୈଃ କର୍ମଦୋଷୈଃ ସଦାସନ୍ମିଶ୍ରଯୋନିଷୁ ॥ ୧୧ ॥**

ସେହି ଅଭିମାନ ଯୋଗୁଁ ସେ ଦେହ ସଂସର୍ଗଦ୍ୱାରା କରାଯାଇଥିବା ପୁଣ୍ୟପାପ ରୂପକ କର୍ମ ଦୋଷରୁ ନିଜର ସ୍ୱାଧୀନତା ଓ ଶାନ୍ତି ନଷ୍ଟ କରେ, ତଥା ଉତ୍ତମ, ମଧ୍ୟମ ଏବଂ ନୀଚ ଯୋନିମାନଙ୍କରେ ଜନ୍ମ ଗ୍ରହଣ କରି ସଂସାର ଚକ୍ରରେ ଘୁରିବୁଲିଥାଏ ।

**ଅର୍ଥେ ହ୍ୟବିଦ୍ୟମାନେଽପି ସଂସୃତିର୍ନ ନିବର୍ତତେ ।**
**ଧ୍ୟାୟତୋ ବିଷୟାନସ୍ୟ ସ୍ୱପ୍ନେଽନର୍ଥାଗମୋ ଯଥା ॥ ୧୨ ॥**

ଯେପରି ସ୍ୱପ୍ନରେ ଭୟ - ଶୋକାଦିର କୌଣସି କାରଣ ନଥିଲେ ମଧ୍ୟ ସ୍ୱପ୍ନପଦାର୍ଥରେ ବିଶ୍ୱାସ (ଆସ୍ଥା) ହେବା ଯୋଗୁଁ ଦୁଃଖ ଭୋଗ କରିବାକୁ ପଡ଼େ । ସେହିପରି ଭୟ-ଶୋକ, ମୁଁ -ମୋର ଏବଂ ଜନ୍ମ -ମରଣାଦି ରୂପକ ସଂସାରର କୌଣସି ଅସ୍ତିତ୍ୱ ନଥିଲେ ମଧ୍ୟ ଅବିଦ୍ୟାବଶ ବିଷୟଗୁଡ଼ିକୁ ଚିନ୍ତନ କଲେ ଜୀବ ସଂସାର ଚକ୍ରରୁ କେବେହେଲେ ନିବୃତ୍ତ ହୁଏ ନାହିଁ ।

**ଅତଏବ ଶନୈଶ୍ଚିତ୍ତଂ ପ୍ରସକ୍ତମସତାଂ ପଥି ।**
**ଭକ୍ତିଯୋଗେନ ତୀବ୍ରେଣ ବିରକ୍ତ୍ୟା ଚ ନୟେଦ୍‌ବଶମ୍ ॥ ୧୩ ॥**

ଏଣୁ ଅସନ୍ମାର୍ଗ (ବିଷୟ ଚିନ୍ତନ)ରେ ପ୍ରବେଶ କରିଥିବା ଚିତ୍ତକୁ ତୀବ୍ର ଭକ୍ତିଯୋଗ ଏବଂ ବୈରାଗ୍ୟ ଦ୍ୱାରା ଧୀରେ ଧୀରେ ନିଜ ଆୟତ୍ତକୁ ଆଣିବା ଉଚିତ୍ । ଏହା ହେଉଛି ବୁଦ୍ଧିମାନ ବ୍ୟକ୍ତିର କାର୍ଯ୍ୟ ।

**ଦେବହୂତିରୁବାଚ**

**ପୁରୁଷଂ ପ୍ରକୃତିଂ ବ୍ରହ୍ମନ୍ନ ବିମୁଞ୍ଚତି କର୍ହିଚିତ୍ ।**
**ଅନ୍ୟୋନ୍ୟାପାଶ୍ରୟତ୍ୱାଚ୍ଚ ନିତ୍ୟତ୍ୱାଦନୟୋଃପ୍ରଭୋ ॥ ୧୪ ॥**

ଦେବହୂତି କହିଲେ - ପ୍ରଭୋ ! ପୁରୁଷ ଓ ପ୍ରକୃତି ଦୁଇଟିଯାକ ନିତ୍ୟ ଏବଂ ଜଣେ ଅନ୍ୟଜଣଙ୍କର ଆଶ୍ରୟରେ ରୁହନ୍ତି । ଏଣୁ ପ୍ରକୃତି ପୁରୁଷକୁ କେବେ ହେଲେ ଛାଡ଼ି ପାରିବ ନାହିଁ ।

**ଯଥା ଗନ୍ଧସ୍ୟ ଭୂମେଶ୍ଚ ନ ଭାବୋ ବ୍ୟତିରେକତଃ ।**
**ଅପାଂ ରସସ୍ୟ ଚ ଯଥା ତଥା ବୁଦ୍ଧେଃ ପରସ୍ୟ ଚ ॥ ୧୫ ॥**

ହେ ପରମାତ୍ମା ! ଯେପରି ଗନ୍ଧ ଏବଂ ପୃଥିବୀ ତଥା ରସ ଏବଂ ଜଳର ପୃଥକ୍ ପୃଥକ୍ ବା ଭିନ୍ନ ଭିନ୍ନସ୍ଥିତି ହୋଇ ପାରିବ ନାହିଁ, ସେହିପରି ପୁରୁଷ ଓ ପ୍ରକୃତି ମଧ୍ୟ ଜଣେ ଅନ୍ୟକୁ ଛାଡ଼ି ରହି ପାରିବ ନାହିଁ ।

**ଅକର୍ତ୍ତୁଃ କର୍ମବନ୍ଧୋଽୟଂ ପୁରୁଷସ୍ୟ ୟଦାଶ୍ରୟଃ ।**
**ଗୁଣେଷୁ ସସ୍ତୁ ପ୍ରକୃତେଃ କୈବଲ୍ୟଂ ତେଷ୍ୱତଃ କଥମ୍ ॥ ୧୬ ॥**

ଏଣୁ ଯାହାଙ୍କର ଆଶ୍ରୟରୁ ଅକର୍ତ୍ତା ପୁରୁଷକୁ ଏହି କର୍ମ ବନ୍ଧନ ପ୍ରାପ୍ତ ହୋଇଛି, ସେହି ପ୍ରକୃତିର ଗୁଣରେ ଥାଇ ତାହାକୁ କୈବଲ୍ୟପଦ କିପରି ପ୍ରାପ୍ତ ହେବ ?

**କ୍ୱଚିତ୍ତତ୍ତ୍ୱାବମର୍ଶେନ ନିବୃତ୍ତଂ ଭୟମୁଲ୍ବଣମ୍ ।**
**ଅନିବୃତ୍ତନିମିତ୍ତତ୍ୱାତ୍ ପୁନଃ ପ୍ରତ୍ୟବତିଷ୍ଠତେ ॥୧୭ ॥**

ଯଦି ତତ୍ତ୍ୱ ବିଚାର କରିବା ଦ୍ୱାରା କେବେ ଏହି ସଂସାର ବନ୍ଧନର ତୀବ୍ର ଭୟ ନିବୃତ ହୋଇଯାଏ, ତେବେ ମଧ୍ୟ ତାହାର ନିମିତ୍ତଭୂତ ପ୍ରାକୃତ ଗୁଣର ଅଭାବ ନ ହେଲେ ସେହି ଭୟ ପୁନର୍ବାର ଉପସ୍ଥିତ ହୋଇପାରେ ।

**ଶ୍ରୀଭଗବାନୁବାଚ**

**ଅନିମିତ୍ତ - ନିମିତ୍ତେନ ସ୍ୱଧର୍ମେଣାମଳାତ୍ମନା**
**ତୀବ୍ରୟା ମୟି ଭକ୍ତ୍ୟା ଚ ଶ୍ରୁତ - ସମ୍ଭୃତୟା ଚିରମ୍ ॥ ୧୮ ॥**
**ଜ୍ଞାନେନ ଦୃଷ୍ଟତତ୍ତ୍ୱେନ ବୈରାଗ୍ୟେଣ ବଲୀୟସା ।**
**ତପୋୟୁକ୍ତେନ ୟୋଗେନ ତୀବ୍ରେଣାତ୍ମସମାଧିନା ॥ ୧୯ ॥**
**ପ୍ରକୃତିଃ ପୁରୁଷସ୍ୟେହ ଦହ୍ୟମାନା ତ୍ୱହର୍ନିଶମ୍ ।**
**ତିରୋଭବିତ୍ରୀ ଶନକୈରଗ୍ନେର୍ୟୋନିରିବାରଣିଃ ॥ ୨୦ ॥**

ଶ୍ରୀ ଭଗବାନ କପିଳ କହିଲେ - ହେ ମାତା ! ଯେପରି ଅଗ୍ନିର ଉତ୍ପତ୍ତିସ୍ଥାନ ଅରଣି (ଯଜ୍ଞର ଅଗ୍ନି ପାଇଁ ମନ୍ଥନ କାଷ୍ଠ) ନିଜଠାରୁ ଉତ୍ପନ୍ନ ଅଗ୍ନିଦ୍ୱାରା ଜଳି ଭସ୍ମ ହୋଇଯାଏ, ସେହିପରି ନିଷ୍କାମ ଭାବରେ କରାଯାଉଥିବା ସ୍ୱଧର୍ମ ପାଳନ ଦ୍ୱାରା ଅନ୍ତଃକରଣ ଶୁଦ୍ଧ ହୋଇ ଦୀର୍ଘ ଦିନ ଧରି ଭଗବତ୍ କଥା ଶ୍ରବଣ ଦ୍ୱାରା ଦୃଢ଼ ହୋଇଥିବା ମୋର ତୀବ୍ର ଭକ୍ତି ଯୋଗୁଁ, ତତ୍ତ୍ୱସାକ୍ଷାତ୍କାର କରାଉଥିବା ଧ୍ୟାନା ଭ୍ୟାସଦ୍ୱାରା ଏବଂ ଚିତ୍ତର ପ୍ରଗାଢ଼ ଏକାଗ୍ରତା ଦ୍ୱାରା ପୁରୁଷର ପ୍ରକୃତି (ଅବିଦ୍ୟା) ଦିବା - ରାତ୍ର କ୍ଷୀଣ ହୋଇ ଧିରେ ଧିରେ ଲୀନ ହୋଇଯାଏ ।

**ଭୁକ୍ତ - ଭୋଗା ପରିତ୍ୟକ୍ତା ଦୃଷ୍ଟ -ଦୋଷା ଚ ନିତ୍ୟଶଃ ।**
**ନୈଶ୍ୱରସ୍ୟାଶୁଭଂ ଧତ୍ତେ ସ୍ୱେ ମହିମ୍ନି ସ୍ଥିତସ୍ୟ ଚ ।। ୨୧ ।।**

ନିତ୍ୟ ପ୍ରତି ଦୋଷ ଦର୍ଶନ କଲେ, ଭୋଗକରି ତ୍ୟାଗ କରିଥିବା ସେହି ପ୍ରକୃତି ନିଜ ସ୍ୱରୂପରେ ସ୍ଥିତ ଏବଂ ସ୍ୱତନ୍ତ୍ର (ବନ୍ଧନମୁକ୍ତ) ହୋଇଥିବା ସେହି ପୁରୁଷର କିଛି କ୍ଷତି କରିପାରେ ନାହିଁ ।

**ଯଥା ହ୍ୟପ୍ରତିବୁଦ୍ଧସ୍ୟ ପ୍ରସ୍ୱାପୋ ବହ୍ୱନର୍ଥଭୃତ୍ ।**
**ସ ଏବ ପ୍ରତିବୁଦ୍ଧସ୍ୟ ନ ବୈ ମୋହାୟ କଳ୍ପତେ ।। ୨୨ ।।**

ଯେପରି ଶୋଇଥିବା ପୁରୁଷକୁ ସ୍ୱପ୍ନରେ ଅନେକ ଅନର୍ଥର ଅନୁଭବ କରିବାକୁ ପଡ଼ିଥାଏ, କିନ୍ତୁ ଜାଗ୍ରତ ହୋଇଗଲା ପରେ ତାହାକୁ ସେହି ସ୍ୱପ୍ନର ଅନୁଭବରୁ କୌଣସି ପ୍ରକାରର ମୋହ ହୁଏ ନାହିଁ ।

**ଏବଂ ବିଦିତ - ତତ୍ତ୍ୱସ୍ୟ ପ୍ରକୃତିର୍ମୟି ମାନସମ୍ ।**
**ଯୁଞ୍ଜତୋ ନାପକୁରୁତ ଆତ୍ମାରାମସ୍ୟ କର୍ହିଚିତ୍ ।। ୨୩ ।।**

ସେହିପରି ଯାହାର ତତ୍ତ୍ୱଜ୍ଞାନ ହୋଇଯାଇଛି ଏବଂ ଯିଏ ନିରନ୍ତର ମୋଠାରେ ମନ ଲଗାଇଥାଏ, ସେହି ଆତ୍ମାରାମ ମୁନିଙ୍କର ପ୍ରକୃତି କେବେ ହେଲେ କ୍ଷତି କରିପାରେ ନାହିଁ ।

**ଯଦା ନ ଯୋଗୋପଚିତାସୁ ଚେତୋ**
**ମାୟାସୁ ସିଦ୍ଧସ୍ୟ ବିଷଜ୍ଜତେଽଙ୍ଗ !**
**ଅନନ୍ୟ - ହେତୁଷ୍ୱଥ ମେ ଗତିଃ ସ୍ୟାଦ୍**
**ଆତ୍ୟନ୍ତିକୀ ଯତ୍ର ନ ମୃତ୍ୟୁହାସଃ ।। ୨୪ ।।**

ହେ ମାତା ! ଯଦି ଯୋଗୀର ଚିତ୍ତ ସାଧନା ଦ୍ୱାରା ବୃଦ୍ଧି ପାଇଥିବା ମାୟାମୟ ଅଣିମାଦି ସିଦ୍ଧିରେ, ଯାହାର ପ୍ରାପ୍ତିରେ ଯୋଗ ବ୍ୟତୀତ ଅନ୍ୟ କୌଣସି ସାଧନ ନାହିଁ କି ପ୍ରବେଶ ମଧ୍ୟ କରେ ନାହିଁ, ତେବେ ସେ ମୋର ସେହି ଅବିନାଶୀ ପରମପଦକୁ ପ୍ରାପ୍ତ କରେ - ଯେଉଁଠାରେ ମୃତ୍ୟୁ ମଧ୍ୟ ପ୍ରବେଶ କରିପାରେ ନାହିଁ ।



# ତୃତୀୟ ଅଧ୍ୟାୟ

## ଶ୍ରୀଭଗବାନୁବାଚ

**ନୈତତ୍‌ଖଳାୟୋପଦିଶେନ୍ନାବିନୀତାୟ କର୍ହିଚିତ୍ ।**
**ନ ସ୍ତବ୍ଧାୟ ନ ଭିନ୍ନାୟ ନୈବ ଧର୍ମଧ୍ୱଜାୟ ଚ ॥ ୧॥**
**ନ ଲୋଲୁପାୟୋପଦିଶେନ୍ନ ଗୃହାରୂଢଚେତସେ ।**
**ନାଭକ୍ତାୟ ଚ ମେ ଜାତୁ ନ ମଦ୍‌ଭକ୍ତଦ୍ୱିଷାମପି ॥ ୨ ॥**

ଶ୍ରୀ ଭଗବାନ୍ କପିଳ କହିଲେ – ମୁଁ ତୁମକୁ ଯେଉଁ ଜ୍ଞାନ ଉପଦେଶ ଦେଇଛି ତାହା ଦୁଷ୍ଟ, ଧୃଷ୍ଟ ବା ଅଶିଷ୍ଟ, ଅହଂକାରୀ, ଦୁରାଚାରୀ ଏବଂ ଦମ୍ଭୀ ମନୁଷ୍ୟମାନଙ୍କୁ ଶୁଣାଇବା ଉଚିତ୍ ନୁହେଁ । ଯିଏ ବିଷୟଲୋଲୁପ, ଗୃହାସକ୍ତ ହୋଇଥିବ, ମୋର ଭକ୍ତ ହୋଇନଥିବ କିମ୍ବା ମୋର ଭକ୍ତମାନଙ୍କଠାରେ ଦ୍ୱେଷ ଭାବନା କରୁଥିବ, ତାହାକୁ ମଧ୍ୟ ଏହି ଉପଦେଶ କେବେ ହେଲେ ପ୍ରଦାନ କରିବ ନାହିଁ ।

**ଶ୍ରଦ୍ଦଧାନାୟ ଭକ୍ତାୟ ବିନୀତାୟାନସୂୟବେ ।**
**ଭୂତେଷୁ କୃତମୈତ୍ରାୟ ଶୁଶ୍ରୂଷାଭିରତାୟ ଚ ॥ ୩ ॥**
**ବହିର୍ଜାତବିରାଗାୟ ଶାନ୍ତଚିତ୍ତାୟ ଦୀୟତାମ୍ ।**
**ନିର୍ମତ୍ସରାୟ ଶୁଚୟେ ଯସ୍ୟାହଂ ପ୍ରେୟସାଂ ପ୍ରିୟଃ ॥ ୪ ॥**

ଯିଏ ଅତ୍ୟନ୍ତ ଶ୍ରଦ୍ଧାଳୁ, ଭକ୍ତ, ବିନୟୀ, ଅନ୍ୟମାନଙ୍କ ପ୍ରତି ଦୋଷଦୃଷ୍ଟି ନ ରଖୁଥିବ, ସମସ୍ତ ପ୍ରାଣୀମାନଙ୍କ ସହିତ ମିତ୍ରତାଭାବ ରଖୁଥିବ, ଗୁରୁଙ୍କ ସେବାରେ ତତ୍ପର ବାହ୍ୟ ବିଷୟରେ ଅନାସକ୍ତ, ଶାନ୍ତ ଚିତ୍ତ, ମତ୍ସର ବା କ୍ରୋଧଶୂନ୍ୟ ଏବଂ ପବିତ୍ରଚିତ୍ତ ହୋଇଥିବ ତଥା ମୋତେ ପରମ ପ୍ରିୟତମ ବୋଲି ମାନୁଥିବ ତାହାକୁ ଏହି ଜ୍ଞାନ ପ୍ରଦାନ କରିବା ଉଚିତ୍ ।

**ୟ ଇଦଂ ଶୃଣୁୟାଦମ୍ବ ଶ୍ରଦ୍ଧୟା ପୁରୁଷଃ ସକୃତ୍ ।**
**ୟୋବାଭିଧତ୍ତେ ମଚ୍ଚିତ୍ତଃ ସ ହ୍ୟେତି ପଦବୀଂ ଚ ମେ ॥ ୫ ॥**

ହେ ମାତା ! ଯେଉଁ ବ୍ୟକ୍ତି ମୋଠାରେ ଚିତ୍ତନିବେଶ କରି ତାହାକୁ ଶ୍ରଦ୍ଧାପୂର୍ବକ ଥରେ ମାତ୍ର ଶ୍ରବଣ ବା କଥନ କରିବ, ସେ ମୋର ପରମପଦକୁ ପ୍ରାପ୍ତ କରିବ ।

**ଦେବହୂତିରୁବାଚ**

**ୟନ୍ନାମଧେୟ - ଶ୍ରବଣାନୁକୀର୍ତନାଦ୍**
**ୟତ୍ପ୍ରହ୍ୱଣାଦ୍ ୟତ୍ସ୍ମରଣାଦପି କ୍ୱଚିତ୍ ।**
**ଶ୍ୱାଦୋଽପି ସଦ୍ୟଃ ସବନାୟ କଳ୍ପତେ**
**କୁତଃ ପୁନସ୍ତେ ଭଗବନ୍ନୁ ଦର୍ଶନାତ୍ ॥ ୬ ॥**

ଦେବହୂତି କହିଲେ - ହେ ପ୍ରଭୋ ! ଆପଣଙ୍କ ନାମ ଶ୍ରବଣ କିମ୍ବା କୀର୍ତ୍ତନ କରିବା ଦ୍ୱାରା ତଥା ଭୁଲ୍‌ରେ ମଧ୍ୟ କେବେ କେବେ ଆପଣଙ୍କର ବନ୍ଦନ ବା ସ୍ମରଣ କରିବାଦ୍ୱାରା କୁକୁରମାଂସ ଖାଉଥିବା ଚାଣ୍ଡାଳ ମଧ୍ୟ (ସୋମଯାଗ - ଏହା ଏକ ତ୍ରୈବାର୍ଷିକ ଯଜ୍ଞ, ଯେଉଁଥିରେ ସୋମରସ ପାନ କରାଯାଏ) (ତେଣୁ ଆପଣଙ୍କ ଦର୍ଶନଦ୍ୱାରା ମନୁଷ୍ୟ କୃତକୃତ୍ୟ ହୋଇଯାଏ- ଏଥିରେ କହିବାର କ'ଣ ଅଛି ?) ଯିଏ ଆପଣଙ୍କୁ ପ୍ରକୃତରେ ଦେଖିଛି, ତାଙ୍କ ବିଷୟରେ କଣ କିଛି କହିହେବ ?

**ଅହୋବତ ଶ୍ୱପଚୋଽତୋ ଗରୀୟାନ୍**
**ୟଜ୍ଜିହ୍ୱାଗ୍ରେ ବର୍ତତେ ନାମ ତୁଭ୍ୟମ୍ ।**
**ତେପୁସ୍ତପସ୍ତେ ଜୁହୁବୁଃ ସସ୍ନୁରାର୍ୟ୍ୟା**
**ବ୍ରହ୍ମାନୂଚୁର୍ନାମ ଗୃଣନ୍ତି ୟେ ତେ ॥ ୭ ॥**

ଅହୋ ! ସେହି ଚଣ୍ଡାଳ ମଧ୍ୟ ଏହାଠାରୁ ସର୍ବଶ୍ରେଷ୍ଠ ଅଟେ । କାରଣ ତାହାର ଜିହ୍ୱାଗ୍ରରେ ଆପଣଙ୍କର ନାମ ବିରାଜାମାନ । ଯେଉଁ ଶ୍ରେଷ୍ଠ ବ୍ୟକ୍ତିଗଣ ଆପଣଙ୍କ ନାମ ଉଚ୍ଚାରଣ କରନ୍ତି, ସେମାନେ ତପ, ଯଜ୍ଞ, ତୀର୍ଥସ୍ନାନ, ସଦାଚାର ପାଳନ ଓ  ବେଦ ଅଧ୍ୟୟନ - ସବୁକିଛି ନିଶ୍ଚିତ ଭାବରେ ସାରି ଦେଇଛନ୍ତି ।

ୟଂ ତ୍ୱାମହଂ ବ୍ରହ୍ମ ପରଂ ପୁମାଂସଂ
ପ୍ରତ୍ୟକ୍‌ସ୍ରୋତସ୍ୟାତ୍ମନି ସଂବିଭାବ୍ୟମ୍ ।
ସ୍ୱତେଜସା ଧ୍ୱସ୍ତ-ଗୁଣ - ପ୍ରବାହଂ
ବନ୍ଦେ ବିଷ୍ଣୁଂ କପିଳଂ ବେଦଗର୍ଭମ୍ ॥ ୮ ॥

ଆପଣ ସାକ୍ଷାତ ବ୍ରହ୍ମ ଅଟନ୍ତି । ଆପଣ ହିଁ ପରମ ପୁରୁଷ, ବୃତ୍ତିମାନଙ୍କର ପ୍ରବାହକୁ ଅନ୍ତର୍ମୁଖ କରି ଅନ୍ତଃକରଣରେ ଆପଣଙ୍କୁ ହିଁ ଚିନ୍ତନ କରାଯାଏ, ଆପଣ ନିଜ ତେଜରୁ ମାୟାର କାର୍ଯ୍ୟ ଗୁଣ - ପ୍ରବାହକୁ ଶାନ୍ତ କରି ଦେଉଛନ୍ତି ତଥା ଆପଣଙ୍କ ଉପରେ ସଂପୂର୍ଣ୍ଣ ବେଦତତ୍ତ୍ୱ ନିହିତ ଅଛି । ଏପରି ସାକ୍ଷାତ୍ ବିଷ୍ଣୁ ସ୍ୱରୂପ ଆପଣଙ୍କୁ ମୁଁ ପ୍ରଣାମ କରୁଛି ।

**କପିଳଉବାଚ**

ମାର୍ଗେଣାନେନ ମାତସ୍ତେ ସୁସେବ୍ୟେନୋଦିତେନ ମେ ।
ଅସ୍ଥିତେନ ପରାଂ କାଷ୍ଠାମଚିରାଦବରୋତ୍ସ୍ୟସି ॥ ୯ ॥

କପିଳ କହିଲେ - ହେ ମାତା ! ମୁଁ ତୁମକୁ ଏହି ଯେଉଁ ସୁଗମ ମାର୍ଗ କହିଲି ତାହା ଅବଲମ୍ବନ କଲେ ତୁମେ ଶୀଘ୍ର ପରମପଦ ପ୍ରାପ୍ତ କରିବ ।

ଶ୍ରଦ୍ଧତ୍ସ୍ୱୈତନ୍ମତଂ ମହ୍ୟଂ ଜୁଷ୍ଟଂ ୟଦ୍ ବ୍ରହ୍ମବାଦିଭିଃ ।
ୟେନ ମାମଭବଂ ୟାୟା ମୃତ୍ୟୁମୃଚ୍ଛନ୍ତ୍ୟତଦ୍ୱିଦଃ ॥ ୧୦ ॥

ତୁମେ ମୋର ଏହି ମତ ଓ ସିଦ୍ଧାନ୍ତକୁ ବିଶ୍ୱାସ କର । ବ୍ରହ୍ମବାଦୀମାନେ ଏହାକୁ ପ୍ରୟୋଗ କରିଛନ୍ତି । ଏହାଦ୍ୱାରା ତୁମେ ମୋର ଜନ୍ମ ମରଣ ରହିତ ସ୍ୱରୂପକୁ ପ୍ରାପ୍ତ କରିବ । ଯେଉଁମାନେ ମୋର ଏହି ମତ ବା ସିଦ୍ଧାନ୍ତକୁ ଜାଣନ୍ତି ନାହିଁ ସେମାନେ ଜନ୍ମ ମୃତ୍ୟୁ ଚକ୍ରରେ ପଡନ୍ତି ।

**ମୈତ୍ରେୟ ଉବାଚ**

ଇତି ପ୍ରଦର୍ଶ୍ୟ ଭଗବାନ୍ ସତୀଂ ତାମାତ୍ମନୋ ଗତିମ୍ ।
ସ୍ୱମାତ୍ରା ବ୍ରହ୍ମବାଦିନ୍ୟା କପିଲୋଽନୁମତୋ ୟଯୌ ॥ ୧୧॥

ମୈତ୍ରେୟ କହିଲେ - ଏହିପରି ନିଜର ଶ୍ରେଷ୍ଠ ଆତ୍ମଜ୍ଞାନ ଉପଦେଶ କରି କପିଳଦେବ ନିଜର ବ୍ରହ୍ମବାଦିନୀ ଜନନୀଙ୍କଠାରୁ ଅନୁମତି ନେଇ ସେଠାରୁ ଚାଲିଗଲେ ।

**ସା ଚାପି ତନୟୋକ୍ତେନ ଯୋଗାଦେଶେନ ଯୋଗୟୁକ୍ ।**

**ତସ୍ମିନ୍ନାଶ୍ରମ ଆପୀଢ଼େ ସରସ୍ୱତ୍ୟା ସମାହିତ ॥ ୧୨ ॥**

ତାପରେ ମାତା ଦେବହୂତି ମଧ୍ୟ ସରସ୍ୱତୀଙ୍କ ମୁକୁଟ ସଦୃଶ ଆଶ୍ରମରେ ନିଜ ପୁତ୍ର ଦେଇଥିବା ଉପଦେଶକୁ ଯୋଗ ସାଧନାଦ୍ୱାରା ଯୋଗଭ୍ୟାସ କରି ସାମାଧିରେ ସ୍ଥିତ ହୋଇଗଲେ ।

**ବ୍ରହ୍ମଣ୍ୟବସ୍ଥିତମତିର୍ଭଗବତ୍ୟାତ୍ମସଂଶ୍ରୟେ ।**

**ନିବୃତ୍ତଜୀବାପତ୍ତିତ୍ୱାତ୍ କ୍ଷୀଣକ୍ଲେଶାଽଽପ୍ତନିବୃତିଃ ॥ ୧୩ ॥**

ଜୀବର ଅଧିଷ୍ଠାନଭୂତ ପରଂବ୍ରହ୍ମ ଶ୍ରୀଭଗବାନଙ୍କଠାରେ ବୁଦ୍ଧିମିଶି ଯିବା ଦ୍ୱାରା ତାଙ୍କର ଜୀବଭାବ ନିବୃତ୍ତ ହୋଇଗଲା ଏବଂ ସେ ସମସ୍ତ କ୍ଲେଶରୁ ମୁକ୍ତ ହୋଇ ପରମାନନ୍ଦରେ ନିମଗ୍ନ ହୋଇଗଲେ

**ନିତ୍ୟାରୂଢ଼ - ସମାଧିତ୍ୱାତ୍ ପରାବୃତ୍ତ - ଗୁଣଭ୍ରମା**

**ନ ସସ୍ମାର ତଦାଽଽତ୍ମାନଂ ସ୍ୱପ୍ନେ ଦୃଷ୍ଟମିବୋତ୍ଥିତଃ ॥ ୧୪ ॥**

ବର୍ତ୍ତମାନ ନିରନ୍ତର ସମାଧିସ୍ଥ ହେବାଯୋଗୁଁ ତାଙ୍କ ବିଷୟ ପ୍ରତି ସତ୍ୟତତ୍ତ୍ୱର ଭ୍ରାନ୍ତ ଦୂର ହୋଇଗଲା ଏବଂ ତାଙ୍କ ନିଜ ଶରୀର ଜ୍ଞାନ ମଧ୍ୟ ରହିଲା ନାହିଁ - ଯେପରି ଜାଗ୍ରତ ବ୍ୟକ୍ତିର ସ୍ୱପ୍ନରେ ଦେଖିଥିବା ଶରୀରରଜ୍ଞାନ ମଧ୍ୟ ରହେନାହିଁ ।

**ତଦ୍ଦେହଃ ପରତଃ ପୋଷୋଽପ୍ୟକୃଶଶ୍ଚାଧ୍ୟସମ୍ଭବାତ୍ ।**

**ବଭୌ ମଳୈରବଚ୍ଛନ୍ନଃ ସଧୂମ ଇବ ପାବକଃ ॥ ୧୫ ॥**

ତାଙ୍କ ଶରୀରର ପୋଷଣ ବା ପୁଷ୍ଟି ଅନ୍ୟଦ୍ୱାରା ହିଁ ହେଉଥିଲା କିନ୍ତୁ କୌଣସି ପ୍ରକାରର ମାନସିକ କ୍ଲେଶ ନହେବା ଯୋଗୁଁ ସେ ଦୁର୍ବଳ ହେଲେ ନାହିଁ । ତାଙ୍କର

ତେଜ ବା ଜ୍ୟୋତି ଆହୁରି ଅଧିକ ନିର୍ମଳ ହେଲା ଓ ତାହା ମ୍ଲାନ ହେବା କାରଣରୁ ଧୂମଯୁକ୍ତ ଅଗ୍ନିଭଳି ସୁଶୋଭିତ ହେବାକୁ ଲାଗିଲା ।

**ସ୍ୱାଙ୍ଗଂ ତପୋଯୋଗମୟଂ ମୁକ୍ତକେଶଂ ଗତାମ୍ବରମ୍ ।**
**ଦୈବଗୁପ୍ତଂ ନ ବୁବୁଧେ ବାସୁଦେବ - ପ୍ରବିଷ୍ଟ-ଧୀଃ ।।୧୬ ।।**

ତାଙ୍କର କେଶ ଇତସ୍ତତଃ ହୋଇ ଯାଇଥିଲା ଏବଂ ବସ୍ତ୍ର ମଧ୍ୟ ପଡ଼ିଯାଇଥିଲା, ତଥାପି ନିରନ୍ତର ଭଗବାନଙ୍କଠାରେ ଚିତ୍ତ ନିବେଶ ହୋଇଥିବାରୁ ତାଙ୍କୁ ନିଜର ତପୋଯୋଗମୟ ଶରୀରର କୌଣସି ଜ୍ଞାନଥିଲା କେବଳ ପ୍ରାରବ୍ଧ ହିଁ ତାଙ୍କୁ ରକ୍ଷା କରିଥିଲା ।

**ଏବଂ ସା କପିଳୋକ୍ତେନ ମାର୍ଗେଣାଚିରତଃ ପରମ୍ ।**
**ଆତ୍ମାନଂ ବ୍ରହ୍ମନିର୍ବାଣଂ ଭଗବନ୍ତମବାପ ହ ।। ୧୭ ।।**

ହେ ବିଦୂର ! ଏହିପରି କପିଳଙ୍କ ଦ୍ୱାରା ଶିକ୍ଷାଦିଆଯାଇଥିବା ପ୍ରଦତ୍ତ ମାର୍ଗ ଦ୍ୱାରା ଦେବହୁତି ଅଳ୍ପ ସମୟରେ ନିତ୍ୟମୁକ୍ତ, ପରମାତ୍ମ ସ୍ୱରୂପ ଶ୍ରୀଭଗବାନଙ୍କୁ ପ୍ରାପ୍ତ କଲେ ।

**ୟ ଇଦମନୁଶୃଣୋତି ୟୋଽଭିଧତ୍ତେ**
**କପିଳମୁନେର୍ମତମାତ୍ମୟୋଗଗୁହ୍ୟମ୍ ।**
**ଭଗବତି କୃତଧୀଃ ସୁପର୍ଣକେତା**
**ବୁପଲଭତେ ଭଗବତ୍ପଦାରବିନ୍ଦମ୍ ।। ୧୮ ।।**

ଏହା ଅଧ୍ୟାତ୍ମଯୋଗର ଗୂଢ଼ ରହସ୍ୟ ଅଟେ । ଯିଏ ଏହାକୁ ଶ୍ରବଣ କରେ କିମ୍ବା ବର୍ଣ୍ଣନା କରେ ଅଥବା ଶିକ୍ଷା ପ୍ରଦାନ କରେ ସେ ଭଗବାନ ଗରୁଡ଼ଧ୍ୱଜଙ୍କ ଭକ୍ତିରେ ଯୁକ୍ତ ହୋଇ ଖୁବ୍ ଶୀଘ୍ର ଶ୍ରୀହରିଙ୍କ ଚରଣାବିନ୍ଦକୁ ପ୍ରାପ୍ତ କରେ । ଏହା କପିଳଦେବଙ୍କ ମତ ଅଟେ ।

**ହରିଃ ଓଁ ତତ୍ ସତ୍ ।।**

